# ବହିଟିର ପରିଚୟ

ମାୟାଧର ମାନସିଂହ ଥିଲେ ଆମ ସାହିତ୍ୟର ଜଣେ ଅତି ବଡ କବି । ତାଙ୍କର ହୃଦୟରେ କବିତା ଭରି ରହିଥିଲା । ସେ କବିତା ଲେଖିବା ଭିତରେ ପିଲାଙ୍କ ପାଇଁ ବି ଅନେକ କବିତା ଲେଖିଯାଇଛନ୍ତି । ସେ କବିତା ଗୁଡ଼ିକର ଭାଷା ଯେପରି ସରଳ, ସେପରି ମନଛୁଆଁ । ସେ ସବୁ ବିଷୟ ବି କେବେ ପୁରୁଣା ହୁଏନା । ଏବେ ବି ପିଲାଟିଏ କହୁଥିବ—

''କାହାର ଅଛିରେ ବୋଉ
ମୋ ବୋଉ ପରି''

ଏବେ ବି ପକ୍ଷୀଛୁଆ ତା ମାକୁ ପଚାରୁଥିବ—

''ମା ମୁଁ ଉଡ଼ିବି କେବେ ।''

ସେମିତି କେତେଟି ଗୀତ ପିଲାଙ୍କୁ ଉପହାର ଦେଉଛୁ ।

—

# ସୂଚୀ

| | | |
|---|---|---|
| ୧ । | ମୋ ବୋଉ | ୫ |
| ୨ । | "ମା ମୁଁ ଉଡ଼ିବି କେବେ ?" | ୭ |
| ୩ । | ଆମ ଗାଆଁ ବୁଢ଼ୀ | ୯ |
| ୪ । | ଚାଷୀଭାଇର ଧାନବୁଣା | ୧୧ |
| ୫ । | ବାରମାସର ଝାଳର ଫଳ | ୧୩ |
| ୬ । | ମେଘୁଆ ଦିନ | ୧୬ |
| ୭ । | ପିଲାଙ୍କ ବଣଭୋଜି | ୧୯ |
| ୮ । | ଯାହା ଭଳି ସିଏ | ୨୨ |
| ୯ । | ସାଧବପୁଅ ସାଥିରେ ନିଅ... | ୨୫ |
| ୧୦ । | ଭାରତମାତାଙ୍କ ଆମେ ସକଳେ ସନ୍ତାନ | ୨୭ |
| ୧୧ । | ଶ୍ରୀରାମ ଓ ଗୁଣ୍ଡୁଚିମୂଷା | ୨୯ |

---

# ମୋ ବୋଉ

କାହାର ଅଛି ରେ ବୋଉ ମୋ ବୋଉ ପରି,
ଖୁଆଇବ କିଏ ଏତେ ଆଦର କରି ?
ବାଧକ ପଡ଼ିଲେ ଶେଯ ପାଖରେ ବସି,
କରୁଥିବେ ସେବା ବୋଉ ଲୁହ ବରଷି ।
ଦିଅଁ ଦେବତାଙ୍କୁ କରୁଥିବେ ପ୍ରାର୍ଥନା,
''ମୋ ପିଲା ନ ଭୋଗୁ ପ୍ରଭୁ ! କିଛି ଯାତନା ।''
ବୁଲୁଥିଲେ କେଉଁ ଆଡ଼େ ହୋଇ ଚଗଲା,
ଖୋଜୁଥିବେ ବୋଉ, ''କାହିଁ ଗଲାମୋ ପିଲା ?''
ଇସ୍କୁଲକୁ ଗଲେ ପାଠ ପଢ଼ିବା ପାଇଁ,
ଦୁଆରେ ରହିବେ ବୋଉ ମୋତେ ଅନାଇ ।
ଇସ୍କୁଲରୁ ପାଠପଢ଼ି ଫେରିଲେ ଘରେ
ଦେହ ଝାଡ଼ିଦେବେ ବୋଉ ଅତି ଆଦରେ;
ଜଳଖିଆ ବାଢ଼ିଦେବେ ଖାଇବା ପାଇଁ,
ପଚାରିବେ, ''କି ପଢ଼ିଲୁ କହିବୁ ନାହିଁ ?''
ମନ ତାଙ୍କ ମାନେ ନାହିଁ, ଯେତେ ମୁଁ ଖାଏ,
ନ ଛାଡ଼ିବେ ପେଟ ପୂରା ଖାଇବା ଯାଏଁ ।
ଖାଇ ଶୁଏ ଯେବେ ତାଙ୍କ ପାଖେ ରାତିରେ,
ସ୍ନେହେ ବୋଉ ହାତ ମାରି ଓଠେ, ଛାତିରେ
କହନ୍ତି, ''ଧନରେ, ଭଲ ହେବୁଟି ତୁହି,
ତୋର ପରଶଂସା କାନେ ଶୁଣିବି ମୁହିଁ ।''
ବୋଉକୁ କରିବି ଖୁସି, ମାନି ବଚନ,
ସମସ୍ତେ କହିବେ ମୋର ମା'ଙ୍କୁ ଧନ୍ୟ !

—



[ଇସ୍କୁଲରୁ ପାଠ ପଢ଼ି ଫେରିଲେ ଘରେ,
ଦେହ ଝାଡ଼ିଦେବେ ବୋଉ ଅତି ଆଦରରେ ।]

# ''ମା' ମୁଁ ଉଡ଼ିବି କେବେ ?''

ଛୋଟ ପକ୍ଷୀ ଛୁଆ,   ତାର ଡେଣା ଉଠି ନାହିଁ
ବସାରୁ ସେ ଉଁକିମାରେ   ଗଛ ଶିଖେ ଥାଇ ।

ମାଆ ତାର ଉଡ଼ିଯାଏ   କାହିଁ କେତେ ଦୂରେ
ଫେରି ଦିଅଇ ଆହାର   ଛୁଆ ଥଣ୍ଟରେ ।

ପୁଣି ଉଡ଼ି ଯାଏ ମାଆ,   ଛୋଟ ବସାଟିରେ
ଛଟପଟ ପକ୍ଷୀ ଛୁଆ   ହୁଅଇ ଅଧୀରେ ।

କେବେ ହେବ ଦୁଇ ଡେଣା   ମାଆପରି ତାର,
ଉଡ଼ିବ ସେ ଆକାଶରେ   ଏପାରୁ ସେ ପାର !

ଗଛୁ ଗଛେ ଉଡ଼ିବ ସେ   ଖେଳିବ ମେଘରେ,
ଉପରୁ ଦେଖିବ ବନ,   ଗିରି, ଗ୍ରାମ ଦୂରେ ।

ସକାଳୁ ସକାଳୁ ମାଆ   ବସା ଛାଡ଼େ ଯେବେ,
ଛୁଆ ପଚାରଇ   ''ମା, ମୁଁ ଉଡ଼ିବି କେବେ ?''

ମାଆ ପକ୍ଷୀ କହେ,   ''ଧନ ସତାର ତୁ କର,
ଡେଣା ତୋର   ହେଉ ବଡ଼, ଟାଣ ହେଉ ପର ।

ମନେ ଡର ରହିବନି   ହେଲେ ଡେଣା ବଡ଼,
ଏକା ଏକା ଖେପିବୁ ତୁ   ସାଗର, ଭୂଧର ।''

—



[ମାଆ ତାର ଉଡିଯାଏ କାହିଁ କେତେ ଦୂରେ,
ଫେରି ଦିଅଇ ଆହାର ଛୁଆ ଥଣ୍ଟରେ ।]

# ଆମ ଗାଆଁ ବୁଢ଼ୀ

ଝୋଟପରି ଧଳାବାଳ, ନଇଁପଡ଼େ ମୁଣ୍ଡ,
ପାକୁ ପାକୁ କରୁଥାଏ ପାକୁଆ ତା ତୁଣ୍ଡ,
ବାଡ଼ି ଧରି ଧୀରେ ଧୀରେ ବୁଲୁଥାଏ ଗାଆଁ
'ଆମ ଗାଆଁ ବୁଢ଼ୀ' ବୋଲି ଡାକ ତାର ନାଆଁ ।

ଗାଁଆଯାକ ନାତି ତାର, ସଭିଙ୍କର ଆଇ,
ପିଲାଏ ତା' ବାଡ଼ି ଦେଇଥାଆନ୍ତି ଲୁଚାଇ,
ବଡ଼ମାନେ କଉତୁକେ କରୁଥିବେ 'ହାଁ' 'ହାଁ',
'ଆମ ଗାଆଁ ବୁଢ଼ୀ' ବୋଲି ଡାକ ତାର ନାଆଁ ।

ବୁଢ଼ୀ ପଶେ ଘରେ ଘରେ ବିନା ଡାକରାରେ,
ଗାଳି ଦେଇ ଗାଆଁ ଝିଅ ବୋହୂଙ୍କୁ ତିଆରେ,
ତାକୁ ଦେଖି ଘରଣୀଏ ହୁଅନ୍ତି ଛାନିଆ,
'ଆମଗାଆଁ ବୁଢ଼ୀ' ବୋଲି ଡାକ ତାର ନାଆଁ ।

ସଞ୍ଜ ହେଲେ ବୁଢ଼ୀ ପାଖେ ଗାଆଁଯାକ ପିଲା
ଶୁଣିବାକୁ ଗପ କରୁଥିବେ ଚିଲାବିଲା,
ଗପ ଶୁଣି ଭୁଲିଯାନ୍ତି ପିଲେ ଖିଆପିଆ,
'ଆମଗାଆଁ ବୁଢ଼ୀ' ବୋଲି ଡାକ ତାର ନାଆଁ ।

ନିଜର ବୟସ ବୁଢ଼ୀ ନିଜେ ନାହିଁ ଜାଣେ,
ଏଇମିତି ଦେଖିଥିଲେ ବାପା, କକାମାନେ,
ନାହିଁ ତାର ପୁଅ ଝିଅ, ନାହିଁ ତାର ସାହା,
ଗାଆଁଟି ଯାକର ଅତି ପ୍ରିୟ ବୁଢ଼ୀ-ମାଆ ।

—



[ ଗାଁଟି ଯାକର ଅତି ପ୍ରିୟ ବୁଢ଼ୀମାଆ ]

# ଚାଷୀଭାଇର ଧାନ ବୁଣା

ବିଲ ଚଷି ଚାଷୀ କରି ମାଟି କମଣ
ବୁଣଇ ବିଲରେ ବିହନ ଧାନ,
ବିହନ ଟୋକେଇ କାଖେ ଧରି ସେ ବୁଣେ,
ସାଇଁ ସାଇଁ ଧାନ ଯାଇ ପଡ଼ଇ ଭୂମେ ।

ଉଡି ପକ୍ଷେ ଟୁଙ୍କୁଛନ୍ତି ଟିକି ଚଢ଼େଇ
ଚାଷୀ ସାନପୁଅ ଦିଏ ତାଙ୍କୁ ଅଡ଼େଇ ।
ଧାନ ବୁଣି ସାରି ଚଷା ଦିଅଇ ମଇ,
ମାଟି ପଡ଼ି ବିହନକୁ ଦିଏ ଘୋଡ଼ାଇ ।

ମନେ ଚିନ୍ତେ ମାଆ ଲକ୍ଷ୍ମୀ ହେବୁ ଭରସା,
ତୋ ଦୟାରେ ହେଉ ମୋର ଚାଷ ସରସା ।
ତୋ ଲାଗି ନମାନେ ଚାଷୀ ବରଷା ଖରା,
ତୋ ଲାଗି ଦିଫାଳ ସେହୁ କରୁଛି ଧରା ।
ଭୋକବେଳେ ମିଳୁ ଅନ୍ନ ପିଲାଙ୍କ ମୁଖେ
ଏହି ଦୟା ସଦା ଥାଉ ମା’ ଗୋ ବୁକେ ।

---



[ ବିହନ ଟୋକେଇ କାଖେ ଧରି ସେ ବୁଣେ,
ସାଇଁ ସାଇଁ ଯାଇ ଧାନ ପଡଇ ଭୂମେ । ]

# ବାରମାସର ଝାଳର ଫଳ

ବରଷକ ଫଳ କରିବ ଅମଳ
ଚାଷୀ ମନ ଛନଛନ,
ଦୂର ଗହୀରରେ ପବନ ଲହରେ
ଦୋଳଇ କିଆରୀ ଧାନ ।

ଦାଆ ଧରି ହାତେ ଚଳେ ବିଲ ପଥେ
ଚାଷୀ ଅତି ତରତରେ,
ବାରମାସ ଝାଳ- ବୁହାଇବା ଫଳ
ଆସିବ ଆଜି ତା ଘରେ ।

ଖରା ବରଷାରେ ଝଡ଼ ବତାସିରେ
ନ ମାନି କାଦୁଅ ପାଣି,
ବଢ଼ାଇଛି ଧାନ, ଚାଷୀର ଗୁହାରି
ପୂରାଇଲେ ଦିଅଁ ଜାଣି ।

ପହଞ୍ଚି ବିଲରେ ଚାଷୀ ଏକ କରେ
ଧରି ଶିଂଷା, ଆନେ ଦାଆ,
କାଟୁ କାଟୁ ଧାନ ବେଳ ଅବସାନ
ଲୁଚେ ଖରା ଡାହାଣିଆ ।

ପୁଅ ଝିଅ ତାର କରି ଛୋଟ ଭାର
ଗୋଟାଇ ଆଙ୍କୁଡ଼ା ଧାନ,
ଡାକନ୍ତି ତାହାକୁ ବେଗେ ଫେରିବାକୁ
ଦିନ ହେଲା ଅବସାନ ।



[ ବାରମାସର ଝାଳର ଫଳ ]

ଏଣେ ତେଣେ ଚାହିଁ ମୁଣ୍ଡ ନୋଇଁ ନୋଇଁ
ଚାଷୀ ଧାନ ବିଡ଼ା କରେ,
ଥୋଇ ମୁଣ୍ଡପରେ ପିଲାଙ୍କୁ ସଙ୍ଗରେ
ଘେନି ଘର ବାଟେ ଚଳେ ।

ବାଟେ ମନେ ମନେ ନମଇ ଚରଣେ
ଗାଆଁ ଦେବୀ ଦେବତାର,
କହି, ‘‘ପିଲେ ମୋର ପାଇବେ ଏଥର
ସୁଖରେ ମୁଠେ ଆହାର ।’’

ମାଡ଼ି ଆସେ ସଞ୍ଜ, ଦେଇ ହମ୍ବା ରଡି
ଫେରୁଛନ୍ତି ଗାଆଁ ଗୋରୁ,
ଆସେ ଚାଷୀ ଖରେ ଭାର ତା ମୁଣ୍ଡରେ
ନ ଲାଗଇ ତାକୁ ଗରୁ ।

---

# ମେଘୁଆ ଦିନ

କଳା ମେଘ ମାଡ଼ି ଆସେ ଆକାଶେ,
ଚଉଦିଗ ଘୋର ଅନ୍ଧାର ଦିଶେ,
ଅଣଚାଷ ବହେ ବାଆ ବତାସି,
ଜଗତକୁ ଅବା ଯିବ ଗରାସି,
ଦୋହଲାଇ ଗଛ,
ବରଷା ଆସଇ ପବନ ପଛ ।

ବରଷା ପବନ ମିଶିଣ ଦୁହେଁ,
ପିଟନ୍ତି ଫେରନ୍ତା ଗୋରୁଙ୍କ ମୁହେଁ,
ମୁହଁ ତଳ କରି ଗାଈଏ ଧାଇଁ,
ଆସନ୍ତି ଗୁହାଳେ ଆଶ୍ରୟ ପାଇଁ,
ଟୋକା ଗାଈଆଳ,
ଓଦାରେ ଥରି କରଇ ଓଗାଳ ।

ଆମ୍ବ ତୋଟା, ବଣ ବିଲେ ବରଷା,
ସାଇଁ ସାଇଁ ମାଡ଼ି ଆସେ ସହସା,
ଚାଷୀଏ ପଖିଆ ତଳାଇ ତଳେ
ଲୁଚାଇ ମୁଣ୍ଡକୁ ଅତି ସହଳେ
ନିଜ ଚାଷବାସ,
ଦେଖନ୍ତି, ଦେହେ ତାଙ୍କ ଓଦାବାସ ।



[ମୁହଁ ତଳ କରି ଗାଈଏ ଧାଇଁ
ଆସନ୍ତି ଗୁହାଳେ ଆଶ୍ରୟ ପାଇଁ ।]

ଘଡ଼ଘଡ଼ି ଚଡ଼ଚଡ଼ି ମାରଇ,
ବିଜୁଳି ବେଳେ ବେଳେ ଚମକଇ,
ବାଟ ଘାଟ ବିଲ ବୁଡ଼ଇ ଜଳେ,
ନଈବଢ଼ି ଉଠେ ବୁଡ଼ାଇ କୂଳେ,
ଗାଆଁ ବାଟଘାଟ,
କାଦୁଅ ପାଣିରେ କି ଲଟପଟ ।

ଏପରି ମେଘୁଆ ଦିନେ ଇସ୍କୁଲେ,
ଯିବାକୁ ମନ ନହୁଏ ତିଳେ,
ଇଚ୍ଛା ହୁଏ ବୋଉ କୋଳରେ ଶୋଇ,
ମୁଠି ମୁଠି ଭଜା ଚାଉଳ ଖାଇ,
ଖାଲି ଶୁଣନ୍ତି,
କି ସୁନ୍ଦର କଥା ମା' କହନ୍ତି !

—

# ପିଲାଙ୍କ ବଣଭୋଜି

ଗୁରୁଜୀ କହିଲେ "ଆଁକୁଡ଼ା* ଧାନକୁ
ଏକାଠି କରରେ ପିଲେ,
ବଣ ଭୋଜି କରି ମଉଜ କରିବା
ନଈ କୂଳ ତୋଟାମାଳେ ।"

ନରିମା'କୁ ଦେଲୁଁ ଧାନ ଦେଲା କୁଟି,
ଡାଲି ଦେଲା ସାହୁଆଣୀ,
ସାରୁ ବାଇଗଣ ହାଡୁସୋଇଁ ଦେଲା
ବାରିରୁ ତାହାର ଆଣି ।

ବଣ ତୋଟାମାଳୁ ଗୋଟାଇଲୁ କାଠ
ଚୁଲି ଦେଲେ ଗୁରୁ ଖୋଳି,
ବାସ କୁସନ ନେଇଥିଲୁଁ ଘରୁ,
ବସାଇଲୁ ମାଟି ବୋଳି ।

ସଇତା, କୁରୁପା, ମୁରଲୀ, ମହନା
ଧଇଲେ ନଈରୁ ମାଛ,
ଗଦା ବିଶୋଈଙ୍କ ଗାଈ ଦୁହିଁକରି—
ନେତରା ଖାଇଲା ନାତ ।

---

* ଆଁକୁଡ଼ା ଧାନ ! ଧାନ କାଟିବା ବେଳେ କେତେକ ଧାନପେଣ୍ଡା ଛିଡ଼ି ପଡ଼ିଯାଏ । ପିଲାମାନେ କଟାଳି ପଛରେ ଥାଇ ତାକୁ ଗୋଟାଇନିଅନ୍ତି ।



[ଭାତ ଡାଲି ମାଛ ଆମ୍ବିଳ ରାନ୍ଧିଲୁ ଖାଇଲୁ କଇଁ ପତରେ ।]

ହସିଲୁ, ଖେଳିଲୁଁ, ଗଛରେ ଚଢ଼ିଲୁଁ,
ପହରିଲୁଁ ନଈ ଜଳେ,
କଅଁଳ ଘାସରେ ଆରାମେ ଶୋଇଲୁ,
ଘନ-ଛାଇ ଗଛ ତଳେ ।

ଭାତ, ଡାଲି, ମାଛ ଆମ୍ବିଳ ରାନ୍ଧିଲୁଁ
ଖାଇଲୁ କଇଁ ପତରେ,
ଘରେ ନିତି ଖାଉ- ହେଲେ ବଣଭୋଜି
ମଉଜ ଭୁଲି ନପାରେ ।

—

# ଯାହା ଭଲି ସିଏ

ଦିନେ ଖରାବେଳେ ଦୂର ତୋଟା ମାଳେ
ଆମ୍ବ ଡାକି କହେ, "ପଣସ ଭାଇ,
ମୋର ରୂପ ଦେଖି କିଏ ନୁହେ ସୁଖୀ ?
ଜିଭୁଁ ଲାଳ ବହେ, ମତେ ଅନାଇଁ ।
ଦେହଯାକ ତୋର କଣ୍ଟା ସଲବଲ
ଏଡ଼େ ବଡ଼ ଦେହ କି ଅସୁନ୍ଦର !
ତୋଳିଲେ ଲାଗିବ ଅଠା ସଲବଲ
ମୋ ଦେହ ଚିକ୍କଣ, ରଙ୍ଗ ଉଜ୍ଜ୍ୱଳ ।

ପଣସ କହିଲା– "ଆରେ ଭାଇ ଆମ୍ବ,
ତୋପରି ଦଶଙ୍କୁ ମୋ ପରି ଜଣେ,
ମୋତେ ଖାଇବାକୁ ଲୋଡ଼ା ଦଶ ଜଣ,
ଜଣେ ମଣିଷକୁ ଲୋଡ଼ା ତୁ ପଣେ ।
ରୂପ ଲାଗି କିଆଁ ଏତେ ଗର୍ବ କରୁ
ମୋତେ ଅଠା ଲାଗି ଦେଉ ତୁ ଗାଳି,
ମୋ ଅଠା ଲାଗିଲେ କ୍ଷତି କାର ନାହିଁ,
ତୋ ଲସିରେ ଘାଆ ହୋଇବ ଖାଲି ।"

ଆମ୍ବ କହେ, "ତୁହି ବଡ଼ ଅଳସୁଆ,
ଗଛମୂଳେ ତଳ ଡାଳେ ତୁ ଥାଉ,
ଆମେ ଖେଳୁଥାଉ ପବନ-ସୁଅରେ,
ଥୋଲା ଥୋଲା ହୋଇ କି ଶୋଭାପାଉ !



[ ଏକ ତୋଟାମାଳେ ଏକା ଭଳି ବଢ଼ି
କଳି ଲାଗିବାର କାରଣ ନାହିଁ । ]

ପେଟେ ତୋର ଖାଲି ମଞ୍ଜି ପଣ ପଣ,
କେଡ଼େ ଅସୁନ୍ଦର ଚିରିଲେ ଦିଶେ,
ଆମ ପେଟେ ଥାଏ ଗୋଟିଏ ଟାକୁଆ
ପେଟ ଭରିଥାଏ ଅମୃତ ରସେ ।''

ଆମ୍ବକୁ ଅନାଇଁ ପଣସ କହଇ,
''ନିକିତି ତଉଲ ସାନ ବଡ଼କୁ,
ହାଲୁକା ହେବାରୁ ଥାଉ ତୁ ଉପରେ
ଭାରୀ ଯୋଗୁଁ ମୁହିଁ ଥାଏ ତଳକୁ ।
ରସ ଖାଇ ମୋର ମଞ୍ଜିକି ଆଦର
କରନ୍ତି ମଣିଷ ଜାଣୁ କି ନାହିଁ ?
ତୋତେ ଖାଇସାରି ତୋ ରସ ନିଗାଡ଼ି,
ଫୋପାଡ଼ି ଦିଅନ୍ତି ଟାକୁଆ କାହିଁ ।''

ଡାଳେ ଥାଇ କହେ ବଣି ଚଢ଼େଇଟି
ଯାହା ଭଳି ସିଏ ଅଟ ହେ ଭାଇ,
ଏକା ତୋଟାମାଳେ ଏକା ଭଳି ବଢ଼ି
କଳି ଲାଗିବାର କାରଣ ନାହିଁ ।

—

# ସାଧବ ପୁଅ ସାଥିରେ ନିଅ...

ସାଧବ ପୁଅ ହେ କୁଆଡ଼େ ଯାଅ,
ହୋଇ ଦରିଆ ପାରି,
ତମ ବୋଇତେ ନେବକି ମତେ
ଯିବି ବଣିଜ କରି ।

କାଟି ଲହଡ଼ି, ଚାଲେ ବୋଇତ
ନୀଳ ସାଗର ଜଳେ,
ଧବଳ ରାଜ-ହଂସ ପରିକା,
ନୀଳ ଆକାଶ ତଳେ ।

ବୋଇତ ତୁମ ଯାଇ ଲାଗିବ
ଅଜଣା ଘାଟେ କେତେ
ନିଅ ସାଥିରେ ଦେଖି ଆଖିରେ
ଆସିବି ଦେଶ ଯେତେ ।

ଦରିଆ ପାରେ ଗଛରୁ ପଡ଼େ
ପରା ମାଣିକ ଝଡ଼ି,
ପିଲାଏ ପରା ହୁଅନ୍ତି ହୀରା
ମୁକୁତା ଛଡ଼ାଛଡ଼ି !

ନୀଳ ମାଣିକ ପର୍ବତ ଶିଖ
ଉପରୁ ରୁପା ନଇ,
ଆସଇ ବହି ସଂଗୀତ ଗାଇ
କି ସୁଖ ଏଠି ରହି ?

ସାଧବ ପୁଅ, ସାଥିରେ ନିଅ
ସେଇ ଦରିଆ ପାରେ,
ବୋଇତେ ଯାଇ ଆସନ୍ତି ଘୂରି
ଦୂର ବିଦେଶେ ଥରେ ।

ସଉଦା ତୁମ ଯାହାବି ଦେବ
ବିକିବି ଘାଟେ ଘାଟେ,
କହିବ ଯାହା ମାନିବି ତାହା
ହୋଇବି ସାହା ବାଟେ ।

—

# ଭାରତମାତାଙ୍କ ଆମେ ସକଳେ ସନ୍ତାନ

ଭାରତମାତାଙ୍କ ଆମେ ସକଳେ ସନ୍ତାନ,
ବଡ଼ ସାନ କେହି ନୋହୁ ସମସ୍ତେ ସମାନ ।
ଅଛୁ ଆମେ ଯେତେ ଜାତି ନାନାପରକାର,
ସେ ସବୁରି ପେଷା ଦେଶ ପାଇଁ ଦରକାର ।
କେ କରିବ ଧାନ ଚାଷ, ଲୁଗା କେ ବୁଣିବ,
ଆଉ କିଏ ଗାଆଁ ଘର ସଫା ରଖୁଥିବ ।
କିଏ ପଢ଼ାଇବ ପାଠ, କେ ଜଗିବ ଗ୍ରାମ,
କିଏ ଯାଇ ଦେଶ ପାଇଁ କରିବ ସଂଗ୍ରାମ ।
ଦେଶ ସେ୍ବା କରିଯିବା ଆମେ ଏହିପରି,
ପ୍ରତି କାମ ଦେଶ ପାଇଁ ଅତି ଦରକାରୀ ।
ସେଥିପାଇଁ ନ ରଖିବା ଉଚ୍ଚ ନୀଚ ଭେଦ,
ସଭିଏଁ ମଣିଷ ଆମେ ନାହିଁଟି ବିଭେଦ ।
ସାନ ବଡ କେହି ନାହିଁ, ସକଳେ ସମାନ,
ଭାତରମାତାଙ୍କ ଆମେ ସମସ୍ତେ ସନ୍ତାନ ।

—









[ ଭାରତମାତାଙ୍କ ଆମେ ସମସ୍ତେ ସନ୍ତାନ । ]

# ଶ୍ରୀରାମ ଓ ଗୁଣ୍ଡୁଚି ମୂଷା

ଯିବେ ସେତୁ ବାନ୍ଧି ସମୁଦ୍ରରେ ରାମ
ଲଙ୍କାକୁ ସଇନ ନେଇ,
ଲଙ୍କା ରାଜା ତାଙ୍କ ସୀତାଙ୍କୁ ନେଇଛି
ତା ସଙ୍ଗେ ଯୁଝିବାପାଇଁ ।

କପି ସୈନ୍ୟମାନେ ବୋହି ଆଣୁଛନ୍ତି
ପାହାଡ଼ୁ ପଥର ଟାଳି,
ନଳ ସେନାପତି ଚତୁର ବିନ୍ଧାଣି-
ସେତୁ ବାନ୍ଧନ୍ତି ସଜାଡ଼ି ।

ବଡ଼ୁ ସାନ ଯାଏ ଯେ ଯେତେ ପାରିଲା
ଆଣୁଛନ୍ତି ବୋହି ମାଥେ,
ପାହାଡ଼, ପର୍ବତ, ମହାମହା ଦ୍ରୁମ
ପାଉଛନ୍ତି ଯାହା ପଥେ ।

ସମୁଦ୍ର ତଟରେ ଗୁଣ୍ଡୁଚି ମୂଷାଟି
ଦେଖିଲା ଏ ବନ୍ଧ କାମ,
ବଡ଼ୁ ସାନ ଯାଏଁ କାମେ ଲାଗିଛନ୍ତି
କାହାରି ନାହିଁ ବିଶ୍ରାମ ।

ମନେ ସେ ଭାବିଲା, ‘‘ହାୟ ! ମୁଁ କି ହୀନ,
ଶ୍ରୀରାମଙ୍କ ସେବା କରି,
ଏତେ ପ୍ରାଣୀ ଧନ୍ୟ ହେଉଛନ୍ତି ! ମୁଁ କି
କିଛି ନ ପାରିବି କରି ?



[ଅତି ଆଦରରେ ତା ଦେହ ଉପରେ
ସ୍ନେହେ ଦେଲେ କର ଚାଳି ।]

ଭାବି ଭାବି ମନେ ବୁଦ୍ଧି ସେ ପାଞ୍ଚିଲା
ଧାଇଁଲା ସମୁଦ୍ର ଜଳେ,
ବୁଡ଼ି ତହିଁ ଓଦା କରି ତା ଦେହକୁ
ଲୋଟେ ଆସି ବାଲି ପରେ ।
ବାଲି ସର ସର ଦେହ ତାର ନେଇ
ବନ୍ଧରେ ଅଇଲା ଝାଡ଼ି,
ପୁଣି ବୁଡ଼ି ଜଳେ ବାଲିରେ ସେ ଗଡ଼େ
ବନ୍ଧେ ଆସେ ବାଲି ଝାଡ଼ି ।
ଘଡ଼ି ଘଡ଼ି ଧରି ଏହିପରି କରି
ଗୁଣ୍ଡୁଚି ପରମ ସୁଖୀ,
ଏକଥା ନୟନେ ଦେଖିଲେ ଶ୍ରୀରାମ
ଦୂରେ ଭାଇ ସଂଗେ ବସି ।
କୁତୂହଳେ ରାମ ପାଣି ପାଖେ ଆସି
ଡାକି ଗୁଣ୍ଡୁଚିକି ସ୍ନେହେ,
ପଚାରିଲେ, "ଆହା, କି ପାଇଁ ପାଣିରେ
ତିନ୍ତାଉ ତୋ ଛୋଟ ଦେହେ ?
କି ପାଇଁ ବା ବାଲି ଶେଯେ ଗଡ଼ି ପୁଣି
ଧାଉଁଛୁ ବନ୍ଧକୁ ଶେଷେ,
ପୁଣି ବୁଡୁଅଛୁ ପୁଣି ଗଡୁଅଛୁ
ବିଶ୍ରାମ ନାହିଁ ନିମିଷେ ?"

ଛୋଟ ସେ ଗୁଣ୍ଡୁଚି ମଥା ନୋଇଁ ଲାଜେ
କହିଲା ବିନୟ ତୁଣ୍ଡେ,
"ପ୍ରଭୁ, ମୋତେ ବାରେ ଧନ୍ୟ କର ଦେଇ
ଶ୍ରୀପଦ ଧୂଳି ମୋ ମୁଣ୍ଡେ ।

ପ୍ରଭୁଙ୍କର ସେବା କରି ହେଉଛନ୍ତି
ପବିତ୍ର ଜଗତ ଜନେ,
ମୁଁ କି ଛାମୁଁଙ୍କର ସେବା ନ ପାରିବି
କରି ? ମୁଁ ଭାବିଲି ମନେ !
ସୈନ୍ୟ, ସେନାପତି ସମୁଦ୍ରେ ଦିଅନ୍ତି
ପର୍ବତ ପାହାଡ଼ ଭରି,
ବିଧାତା ମୋତେ ତ ଦେଇନି ସେ ବଳ
କାହୁଁ ତା ପାରିବି କରି ?
ଛୋଟ ଦେହେ ମୋରଯାହା ମୁଁ ପାରିବି
ତା ଘେନି ପ୍ରଭୁଙ୍କ ସେବା,
କରିବି ବୋଲି ମୁଁ ବିଚାରି କରୁଛି–
ବନ୍ଧେ ଏ ବାଲି ଝାଡ଼ିବା ।''

କଥା ଶୁଣି ତାର ବୀରମଣି ରାମ
ଧରିଲେ ତାହାକୁ ତୋଳି,
ଅତି ଆଦରରେ ତା ଦେହ ଉପରେ
ସ୍ନେହେ ଦେଲେ କର ଟାଳି ।
ପ୍ରଭୁ ଶ୍ରୀରାମଙ୍କ ସ୍ନେହର ସେ ଚିହ୍ନ
ରହିଗଲା ଚିର କାଳ,
ଗୁଣ୍ଡୁଚି ଶରୀରେ ଏବେ ମଧ୍ୟ ଦିଶେ
ତାହାଙ୍କ ଆଙ୍ଗୁଠି ଗାର ।
ସେ ଆଙ୍ଗୁଠି ଗାର ଦେଉଅଛି ଶିକ୍ଷା
ଏ କଥା ଜଗତ-ଜନେ,
ଛୋଟ ହୋଇ ମଧ୍ୟ ଭଲ କାମ କରା-
ଯାଇପାରେ, ଥିଲେ ମନେ ।

—